# ମହାରାଜାଙ୍କ ବିୟୋଗ

ଶୋକ ।



ଶ୍ରୀ ଗଙ୍ଗାପ୍ରସାଦ ସିଂହଙ୍କ ରଚିତ

ଅନୁମତି କ୍ରମେ

ଶ୍ରୀମହେଶ୍ୱର ପଟ୍ଟନାୟକଙ୍କ ଦ୍ୱାରା

ପ୍ରଥମବାର ପ୍ରକାଶିତ ।

।· ସା ।· ବାରିପଦା, ବଡ଼ବଜାର,

ମୟୂରଭଞ୍ଜ ଷ୍ଟେଟ୍



ମୂଲ୍ୟ ଟ ୦ /    ଏକଅଣା ମାତ୍ର

# ଉତ୍କଳମାତାଙ୍କ ଶୋକ ।



ଆରେ ବାପଟିକାଲେ ଅ, ଆ, ର ମଣ୍ଡିତ ବଦନ ତୋର ।
ରାଜବେଶ ଭୂଷା ପିନ୍ଧାଇ ଦେବି ମୁଁ କରିବୁଟି ଦରବାର । ଘୋଷା ।
ଆରେ ମୋ ପୂର୍ଣ୍ଣିମ ଚନ୍ଦ୍ରମା,
ପୂର୍ଣ୍ଣ କର ମୋର କାମନା;
ଦରବାର ତୋର ସଜାଇଣ ଦେବି ଗଢ଼ିଲ ଦେବି ମୂଲ୍ୟ ହାର ।୧।
ଶୋକ କରୁ ନାହିଁ ତୋତେ କାରେ ଧନ
ଲୁଚି ରହିଅଛୁ କାହିଁ;
ତୋତେ ନ ଦେଖିଣ ଅକୁଳ ହୁଅନ୍ତି ପ୍ରତାପ ପ୍ରଫୁଲ୍ଲ ମୋର ।୨।
ବୁଢ଼ା ପିତା ତୋର ଭୂମିରେ ଗଡ଼ନ୍ତି
ହାପୁଣ୍ଡି ହାପୁଣ୍ଡି କହି;
ଯେଉଁ ରାଜାମାନେ ଦେଖିଥାନ୍ତି ତୋତେ କାନ୍ଦୁଅଛନ୍ତି ଅପାର ।୩।
ଆଜି ଏ ରାଜାମାନଙ୍କୁ ସାହସ
ଦେବ ଉତ୍କଳ ଭୂମି ରେ,
[ଡାକ୍ତ] ସେକେଟେରି କେ ନେଇଣି ଶିକ୍ଷ୍ୟା କାଏ ଦେବ ବୁଦ୍ଧି କରି ଭଲ ମୁଖ ର

G. P. Singha

ସମ୍ପୂର୍ଣ୍ଣ ।



# ମହାରାଣୀଙ୍କ ଶୋକ ।



ରାଜାଙ୍କ ବିୟୋଗ ଶୁଣି, କାନ୍ଦନ୍ତି ମୟୂରଭଞ୍ଜରାଣୀ ହେ ପ୍ରାଣନାଥ,
କି କଲ ଦଇବ ଆଣି ହେ ପ୍ରାଣନାଥ । ୧ ।
କାହିଁପାଇଁ ବିଭାହେଲ ମହେଦରଅରେ ଭସାଇଗଲ ହେ ପ୍ରାଣନାଥ,
କୂଳେ, ଲଟାଇ ବୁଡ଼ାଇଦେଲ ହେ ପ୍ରାଣନାଥ ।୨।
ଯେତେବେଳେ ବିଭାହେଲ ମଧୁପର୍କ୍ୟାଘରେ ସତ୍ୟ କରିଲହେ ପ୍ରାଣନାଥ
ଏବେ ସେ ସବୁ ପାଶୋରିଗଲ ହେ ପ୍ରାଣନାଥ ।୩।
କହିଥିଲ ତୁମ୍ଭେ ମୋର ମୁହିଁ ଜାଣିଥିଲି ଅଟେ ତୁମ୍ଭର ହେ ପ୍ରାଣନାଥ,
ନିଶ୍ଚେନ କରିବ ମୁଁ ଅନ୍ତର ହେ ପ୍ରାଣନାଥ । ୪ ।
କୁଳଦୀପକୁ ଛାଡ଼ିଲ, ନୟୁମକରଣ କେତେତ କହିଲ ହେ ପ୍ରାଣନାଥ,
ମୋ ପଞ୍ଚମନକୁ କିଣି ନେଲ ହେ ପ୍ରାଣନାଥ, ।୫।
ଅଟଇ ଅବଳାନାରୀ ଛନ୍ଦକାଣି ନ ପାରିଲି ତୁମ୍ଭର ହେ ପ୍ରାଣନାଥ,
ପରଦେଶେ ହେଲି ହତଶୀର ହେ ପ୍ରାଣନାଥ, ।୬।
ଧନ୍ୟ ସେ ଲାବଣ୍ୟଠାଣି ବନ୍ଧି ଦେନଗଲା କି ଦୋଷ ଜାଣି ହେ ପ୍ରାଣନାଥ
ଏଣି କହେଲି ମୁଁ ଅଭାଗିନୀ ହେ ପ୍ରାଣନାଥ, ।୭।
ଶିବ ସେବିବାର ଫଳ ପାଇଲି ସେବି ସେବି ଏତେକାଳ ହେ ପ୍ରାଣନାଥ,
ଅନାଥିନୀ ହେବା ହେଲା ମୂଳ ହେ ପ୍ରାଣନାଥ, ।୭।
ମଙ୍ଗଳା ମାଆଙ୍କୁ ପୂଜି ସେବା ନକରିଲେ ପାଣି ନ ଛୁଇଁ ହେ ପ୍ରାଣନାଥ
ଉପବାସେ ସଦା ରହିଥାଇ ହେ ପ୍ରାଣନାଥ, ।୮।
ଦେବାଦେବୀ ଏମନ୍ତ କଣ ଶୋଚେ ବରଦେଲେ ଏଇ ଅପୂର୍ଣ ହେ ପ୍ରାଣନାଥ,
ଛଡ଼ାଇନେଲେ ଜୀବନଧନ ହେ ପ୍ରାଣନାଥ ।୯।
ଯେ ବେଳେ ଯେ ଦେଶେ ଯାଅ ହସିହସି ଅଧି ମୋ ଅଟେ କୁହ ହେ
ଅନ୍ୟ ଦେଶସ୍ଥିତ କରୁଥାଅ ହେ ପ୍ରାଣନାଥ, ।୧୦।

ଯଦ୍ୟପି ଦୋଷ ମୋର ବହୁତ କ୍ଷମ ନ ଥିଲ କି ତାର ହେ ପ୍ରାଣନାଥ
ତେବେ ବାରେକ ହୋଇଲ ପାର ହେ ପ୍ରାଣନାଥ ।୧୧।

ଅଚ୍ୟୁତ ଜାଣିଥାନ୍ତି ବମ୍ବେଇକୁ କେବେ ଛାଡ଼ିନଥାନ୍ତି ହେ ପ୍ରାଣନାଥ
ସମନର ଗର୍ବ ଭାଙ୍ଗିଥାନ୍ତି ହେ ପ୍ରାଣନାଥ, ।୧୨।

ପୁତ୍ରସନ୍ତତିକୁ ନେଲ ଚକାତୋଳାକୁ ଦେଖାକରାଇଲ ହେ ପ୍ରାଣନାଥ;
ବୋମ୍ବାଇକୁ ଯିବା କଲ ମୂଳ ହେ ପ୍ରାଣନାଥ ।୧୩।

ଅପସିଦ୍ଧ ଧନ ମୋର ନେଇଯାଅ ମୋତେ ତବସଙ୍ଗର ହେ ପ୍ରାଣନାଥ
ସେବା କରିବ ତବ ପସ୍ତୁର ହେ ପ୍ରାଣନାଥ ।୧୪।

ଯେଣିକି ଗୃହେଁ ମୁହିଁ ମୁଖଚନ୍ଦ୍ର ମାତି ଦଶୁ ଅଛଇ ହେ ପ୍ରାଣନାଥ,
ଅନୁଗ୍ରହିତ ନଥ ତବ ଠାଇ ହେ ପ୍ରାଣନାଥ । ୧୫ ।

ରହିଯିଲଙ୍କ ପଡ଼ିଛି ହାତର କପାଣ କାହିଁ ରହିଛି ହେ ପ୍ରାଣନାଥ
ଦର୍ଶନେ ଶୋକ ବାଢ଼ୁଛି ହେ ପ୍ରାଣନାଥ । ୧୬ ।

ବମ୍ବେଇକି ଯାଇଥିଲ କେଉଁ ଅଭାବରୁ ପ୍ରାଣତେଜିଲ ହେ ପ୍ରାଣନାଥ
ଅଭାଗିନୀକି ନ ହେଉଁକଲ ହେ ପ୍ରାଣନାଥ । ୧୭ ।

ଏ ଘୂଟର ଦେଖା ଏତେକି-ସେ ପୁରେକି ଦେଖା ମୁ ପାଇବକି ହେ ପ୍ରାଣନାଥ
ଥିଲୁଟେ ଅଛୁ ଲେଖି କି ହେ ପ୍ରାଣନାଥ । ୧୮ ।

ଯେତେଙ୍ଗ ଅବା ଥିଲେ ଯାଇ ମୋ ପ୍ରାଣ ସଖୀଳ ପାସରେ ଥାଇ ହେପ୍ରାଣନାଥ
ଅଣିଥାନ୍ତି ନାହିଁତାଇ ହେ ପ୍ରାଣନାଥ । ୧୯ ।

ଚପଳା ପରାଏ ଟଳି ଚମ୍ପଲେ ଅସିବାପାଇଁ ବୋଇଲ ହେ ପ୍ରାଣନାଥ,
ସେ ସ୍ୱଭାବ ଲୁଚି ରହିଲ ହେ ପ୍ରାଣନାଥ । ୨୦ ।

କି ଦୋଷ ମୋହର ଦେଖି-ଚରଣନପାଇ ଗଲ ଉଚ୍ଛେଦି ହେ ପ୍ରାଣନାଥ
ହେଲଇ ମୁଁ ଅବିବେକୀ ହେ ପ୍ରାଣନାଥ । ୨୧ ।

ଅବଳା ବନିତା ଭାଳି-ରାଜ୍ୟ ଯାକ ଛୁଡ଼ୁଛନ୍ତି ବୋବାଳି ହେ ପ୍ରାଣନାଥ
ହୋଇଥିଲ ଗଳାମାଳି ହେ ପ୍ରାଣନାଥ । ୨୨ ।

ସ୍ୱପ୍ନ ତୁମ୍ଭ ମନେ ପଡ଼ି ଅଙ୍ଗପାକ ଦୁଃଖ ଯାଉଛି ବଢ଼ି ହେ ପ୍ରାଣନାଥ
ଶୋକ ଉଠେ ଘଡ଼ି ହେ ପ୍ରାଣନାଥ । ୨୩ ।

କାନ୍ଦୁଛନ୍ତି ତରୁ,ଲତା,ବନ,ପଶୁ ପକ୍ଷୀ ଆଉ ଦେବତା ହେ ପ୍ରାଣନାଥ
କାନ୍ଦନ୍ତି ପୁଣି ବନ୍ଧତା ହେ ପ୍ରାଣନାଥ । ୨୪ ।
ପ୍ରଜାଏ କାନ୍ଦନ୍ତି ଦୁଃଖେ ଅଜ୍ଞକ ଦେଖିବୁ ସେ ଚନ୍ଦ୍ରମୁଖେ ହେ ପ୍ରାଣନାଥ
କର କରୁଣା ସୁତକ ହେ ପ୍ରାଣନାଥ । ୨୫ ।
ଯୁବା ବୟସ ତୁମ୍ଭର ନ ହୋଇ ଥିଲେତ ବୃଦ୍ଧ ଅବର ହେ ପ୍ରାଣନାଥ
କମ୍ପା ତେଜିଲ ସଂସାର ହେ ପ୍ରାଣନାଥ । ୨୬ ।
ଚକ୍ଷୁରୁ ଯେ ଜଳଧାରା ବହୁ ଦୁଃଖ ଘେରେ ସାଗରପରା ହେ ପ୍ରାଣନାଥ
ହଜୁଛ ପଡ଼ଇ ଧରା ହେ ପ୍ରାଣନାଥ । ୨୭ ।
ମୟୂରଭଞ୍ଜ ରାଜ୍ୟରେ ଭବାନ୍ଧିରେ ଭାସୁ ଅଛନ୍ତି ନରେ ହେ ପ୍ରାଣନାଥ
ବୁଡ଼ିଣ ଶୋକ ସାଗରେ ହେ ପ୍ରାଣନାଥ । ୨୮ ।
ତୁମ୍ଭର ମିତ୍ର ଅଶୀର ରାଜ୍ୟେ ରଖିଛନ୍ତି ସଦା ଦାଉଁ ହେ ପ୍ରାଣନାଥ
ଆଉ ରେଖା ଦିଶୁ ନାହିଁ ହେ ପ୍ରାଣନାଥ । ୨୯ ।
ହେଲି ମୁଁ ଚିର ଦୁଃଖିନୀ ଦର୍ଶନ ନାଇକି ଏ ଅଭାଗିନୀ ହେ ପ୍ରାଣନାଥ
ସଦା ହେଲି ଅଭାଗିନୀ ହେ ପ୍ରାଣନାଥ । ୩୦ ।
ପଡ଼ି ରହିତ ସକଳ ତୁମ୍ଭ ଗୁଣ ଗୁଣି ହୁଏ ଦୁର୍ବଳ ହେ ପ୍ରାଣନାଥ
ଅଙ୍ଗେ ଆଉ ନାହିଁ ବଳ ହେ ପ୍ରାଣନାଥ । ୩୧ ।
ଜୋଡ଼ାବାଡ଼ ଆଦି କରି ନେଇପଥ ଘରେ ଦେବ ପଚାରି ହେ ପ୍ରାଣନାଥ
ତୁମ୍ଭ ଗୁଣ ଅନୁସରି ହେ ପ୍ରାଣନାଥ । ୩୨ ।
କହଇ ଗଙ୍ଗା ପ୍ରସାଦ ଜାଣେନାହି ପଡ଼ିବଏ ପ୍ରମାଦ ଗୋ ମାଆ ମୋର
ଅମ୍ଭର ହଜିଗଲା ସମ୍ପଦ ଗୋ ମାଆ ମୋର । ୩୩ ।

# ମାତାଙ୍କ ଶୋକ ।

କାନ୍ଦନ୍ତି ମାତେଶ୍ୱରୀ କରନ୍ତି ଭାବେଲ ବାରଂବାର ମାର ରେ ବାପ ମୋର, କେଉଁଣେ ଗଲୁ ଛାଡ଼ି କରି ରେ ବାପ ମୋର । ୧ । କେତେ ସ୍ନେହ କଲି ତୋତେ, ପଡିବ ଛାଡ଼ିଗଲୁ ଟୋଳୁ ମୋତେରେ ବାପମୋର

ମୋତେ ନ ନେଇଁ ସଙ୍ଗତେରେ ।୨। ପୂର୍ଣ୍ଣଚନ୍ଦ୍ର ନାମବନ୍ଧୁ ଅଠ୍ଠ ଷଷ୍ଟିକଲୁ ମୋର ମାନ ଗ୍ରହ ଟେର, ବାପମୋର, ଶୋକରେ ଗଲୁ ଭସାଇ-ରେ ।୩। ମାତା ବୋଲି ମାନୁଥିଲୁ, ମାଢାଙ୍କୁ କାଣବ ଚେତଣ ଗଲୁରେ ବାପମୋର, ପାଇଁ କେଉଁଠି ରହିଲୁ ରେ ।୪। କାହୁଁ ସେହି ଚନ୍ଦ୍ରମୁଖ ଦେଖି ହୁଲାଇବ ସକଳ ଦୁଃଖ ଟେର ବାପମୋର, କାହୁଁ,ଶୁଣିବ ତୋ ସେହ୍ନ ଡାକ ରେ ।୫। ମୋର ପୁତ୍ର ପ୍ରଫୁଲ୍ଲର କିଏ ଦେବ ନେବ ଶୁଭକାର୍ଯ୍ୟ ଖରଚର ବାପମୋର ପୁଟ୍ଠ, କିଏ କରିବ ଆଦର ରେ ॥ ଏତେ ଟଙ୍କା ବ୍ୟୟ କଲୁ ପୁତ୍ରକୁ ମୋର ସୁଖ ଦେଖାଇଲୁ ରେ ବାପମୋର, ସୁଖ ଧନେ ନ ଦେଖିଲୁ ରେ ୬। ଏକଭାଇ ଯେ ତୋହର ନୀଳଗିରିରେ ରହିଲା ଶ୍ରୀକ୍ଷେତ୍ରେଶ୍ୱର ରେ ବାପମୋର, ଆଉ ଏକ କେନ୍ଦୁଝର ରେ ।୮। ମୋର ଦୁଃଖିଃସଙ୍ଗାଳଙ୍କୁ ବଡ଼ିକଲୁ ଭଲ ଗୃହରେ ଦେଖି ରେ ବାପମୋର ।ଶୁଣି ସବୁ ହୃଦ୍ୟ ସୁଖିରେ ।୯। ରାଜାଙ୍କରବାରପାଇଁ କେତେ ନଟକୁ ଥିଲୁ ଲଗାଇ ରେ ବାପମୋର ଶେଷେ ଭୁଲିଲୁ କାହାଁଇ ରେ ବାପମୋର ।୧୦। ପ୍ରଫୁଲ୍ଲଚନ୍ଦ୍ର ମୋହର କାନ୍ଦଣା ବହୁଁଆଏ ଲୋତକ ଧାର ରେ ବାପମୋର, ରାଣୀ ମଧ୍ୟ ତା ସଙ୍ଗର ରେ ।୧୧। ଗୁରୁ ଭାଇ ବୋଲି କହି ପୁତ୍ରବଧୂ, ଦୁହେଁ ଅକୁଳ ହୋଇ ରେ ବାପମୋର, ଅଧୈର୍ଯ୍ୟ ହୃଅନ୍ତି ସେହିରେ ।୧୨। ଆଉ ଟେକ ବସ୍ତ୍ର ଯିବ ପ୍ରଜାଙ୍କୁ ଆଶ୍ରୟ ବାଣୀ କହିବ ରେ ବାପମୋର,ମୋର ପୁତ୍ରକୁ ଶାନ୍ତ କରିବ ରେ ॥ କେତେଦିନ ପାଇଁ ଭୂମି କ ଲୀଳାକୁ ଗଲୁ ଲଗାଇଦେଇ ରେ ବାପମୋର,ଜାଣୀ ନ ପାରିଲି ମୁହିଁ ରେ ।୧୪। ଅବାଲ୍ୟ କାଳରୁ ତୋତେ ଖିର ଦେଇଥିଲି ତୋ ମୁଖେ ଯେତେ ରେ ବାପମୋର, ଝାଡ଼ ଦେଲୁ ଶେଷ ମୋତେ ରେ ॥ ଘରୁ ଯିବାର ବେଳରେ ମୋତେ କାହିଁ କି ନ କହିଲୁ ରେ ଥରେ ବାପମୋର, ଗଲୁ ମୋର ଅଜ୍ଞାନରେ ରେ ।୧୬। କେତେ ଶିବ ସେବୁଥିଲି ଦେବା ଦେଖିକି ମୁଁ କେତେ ମାନିଲି ରେ ବାପମୋର ଶୁଦ୍ଧଜୀବୀରେ ମୁଁ ଡ଼କୁଥିଲି ରେ ।୧୭। ଯେ ଯାହା ପାଖେ ଥିଲି

କିନ୍ତୁ ମୋ ମନରେ କିଛି ନ ଥିଲାରେ ବାପମୋର, କି ଘଟଣା
ଘଟିଗଲା ରେ ।୧୮। ଭାବୁଥିଲି ପୁତ୍ରମୋର, ଅତି ସୌଭାଗ୍ୟ ରହିଲେ ଭବ
ମଧ୍ୟରେ ରେ ବାପମୋର, ଭୋଗ ଦେବ ସଂସାର ରେ । ୧୯ ।
ଦେବାଦେବୀ ନ ଶୁଣିଲେ ମୋର ଅଞ୍ଚଳ ଜନ ତୋତେ ନେଇଗଲେ ରେ
ବାପମୋର ଦୁଃଖିନୀର ଡାକ ନ ଶୁଣିଲେ ରେ । ୨୦ । ସତେକି
ଫେର ଆସିବୁ ଚନ୍ଦ୍ରମାବଦନକୁ ଦେଖାଇବୁ ରେ ବାପମୋର ପୁତ୍ର
ରତ୍ନରୁ ଲୁବ୍ଧ ହୋଇବୁ ରେ । ୨୧ । ଯେତେବେଳେ ଦେଖାକରୁ
ଭୂମିଷ୍ଠ ପ୍ରଣାମ କରୁ ତୁ ଦୂରୁ ରେ ବାପମୋର, ସଦା ମଥା ତଳକୁ ତୁ
କରୁରେ ।୨୨। ମାଆ ଯେତେବେଳେ କହୁ ଦୁଃଖିନୀର ଦୁଃଖ ହରଣ
ନେଉରେ ବାପମୋର, କେତେ ରାଜ୍ୟ କଥାକୁ ଶୁଣାଉ ରେ । ୨୩ ।
ଯୁଦ୍ଧକୁ ଯେ ବେଳେ ଗଲୁ ଆମ୍ଭମାନଙ୍କ ପ୍ରାଣ ନେଇଥିଲୁ ରେ
ବାପମୋର, ଫେର ଆମ୍ଭଙ୍କ ଫେରାଇ ଦେଲୁ ରେ । ୨୪ । ଏ ବେଳେ
ତୁ ଗଲୁ କାହିଁ ସୁଖନଉକାକୁ ଜଳେ ବୁଡ଼ାଇ ରେ ବାପମୋର
ପୂର୍ଣ୍ଣିମାକୁ ଅମାବସ୍ୟା କରାଇ ରେ । ୨୫ । ସତେ କି ଫେର ଆସିବୁ
ଜଗତ ଲୋକର ଦୁଃଖ ହରିବୁ ରେ ବାପମୋର, ମୋର ଆଶା ସଫଳ
କରିବୁ ରେ । ୨୬ । ସ୍ୱପନରେ ଦେଖା ଦିଅ ଚନ୍ଦ୍ରନ କରିବ ତୋ
ଗୁଣମୁଁ ହିତରେ, ବାପମୋର, ତୋ ସଙ୍ଗରେ ମୋତେ ଘେନି ନ ଅରେ
। ୨୭ । ଆସ ଅଯପୁତ୍ର ମୋର ଦେହ ଝାଳ ପୋଛିବ ଅଞ୍ଚଳ ରେ
ବାପମୋର, ବିଶ୍ୱଦେବ ଚନ୍ଦ୍ରିକା ଚୁଲିବ ରେ । ୨୮ । ଯେ ଧନ
ନଦ ଶୁଣିଲି କାହାକୁ ଆଉ କିଛି ନ କହିଲି ରେ ବାପମୋର ନିଛମଣି
ସଦା ଭବ ହେଉନ୍ଥି ରେ । ୨୯ । ଭାବିଲି ଦେବତା ମୋର ସାହାଯ୍ୟ:
ହୋଇଛନ୍ତି ତୋପର ରେ, ବାପମୋର, ତୋତେ ନେବ ସାଧ୍ୟ ଅଛି
କାରରେ । ୩୦ । କିନ୍ତୁ ତା ଆଗଦିନରୁ ଅନ୍ଧ ମନ୍ଦ ଲାଗଇ
ଦିବଠାରୁ ରେ ବାପମୋର, ଧୈର୍ଯ୍ୟ ପାଶୋର ଚଲି ମନରୁ ରେ ।୩୧।
ତୋହାପର ପୁତ୍ର ପାଇ ପରଶେଷେ ବସିଲି ମୁଁ ହରାଇ ରେ ବାପମୋର
ବାହାର ବିଶ୍ୱର ହେଲା ଏହି ରେ । ବାପମୋର ୩୨ ।

# ବର୍ତ୍ତମାନ ମହାରାଜାଙ୍କ ଶୋକ ।

( ଅଗ୍ରାଧନୁର୍ଦ୍ଧର ଶାରବର ବୃତ୍ତ )

ଅହାଶୀରବରକ୍ଷଇମୋର, ମୋତେ କି ଦୋଷେ କଲ ଅନ୍ତର, ମୁ ଜାଣିବାରେ ମୁଁ ଦୋଷ କରିନାହିଁ ତେଜ୍ୟା କଲ କିପ୍ରକାର ହେ ଜ୍ୟେଷ୍ଠଭ୍ରାତ । ୧। ପିତା ଯେଉଁନ୍ ଗଲେ ସ୍ୱର୍ଗକୁ । ଭୁଲିଲି ଦେଖି ତବ ମୁଖକୁ, ଏତେ ଚିନ୍ତନକର ଶେଷରେ ପାଟଶାଠ ଦେବା କରୁଳି ମୂଳକୁ ହେ ଜ୍ୟେଷ୍ଠ ଭ୍ରାତ ।୨। ଆଉ କାହିଁ ପାଇବ ସେ ସ୍ନେହ । ଉବେ କିପରି ରହିବ ଜୀବ । ମାତା ଭ୍ରାତୃଗଣଙ୍କ କନ୍ଦନ ଶୁଣିଣ ସଦା ଶିନ୍ନ ହୁଏ ଦେହ ହେ ଜ୍ୟେଷ୍ଠଭ୍ରାତ । ଯେତେବେଳେ ମୋତେ ଦେଖୁଥାଅ । ଦେଶ କୁଶଂକୁ ସଦା ଅନାଅ, ଖରାପ ଦେଖିଲେ ଅନ୍ୟ ପିନ୍ଧିବାକୁ ଧରଣ ସଙ୍ଗେ ଅଣ୍ଡାଦଅ ହେ ଜ୍ୟେଷ୍ଠଭ୍ରାତ । ୩। ରଥଯାତ୍ରା ମଧ୍ୟ ଭ୍ରମିଲେ, ମୋତେ ନେଇ ବୁଲ ତବବୁଲେ, ଯେ କଥାକୁ ଏବେ ପାଟଶାର ଦେଇଣ, ହୃଦୋଷରେ ତେଜିଗଲେ ହେ ଜ୍ୟେଷ୍ଠଭ୍ରାତ । ୪ । ଯେଉଁ ଧନଗ ଯାହା କରୁଥାଅ ସବୁ ଦେଗଲ ମୋତେ ନଅ, ରାଜକାର୍ଯ୍ୟମାନ ଅତି ଯତନରେ ମନଦେଇଣ ଶିଖାଅ ହେ ଜ୍ୟେଷ୍ଠଭ୍ରାତ ।୫। ସଦା ବୋଲୁଥାଅ ରାଜ ହୁଅ, ମୋର ମନ୍ତ୍ରୀଙ୍କୁ ମୁକ୍ତ ନଅ, ଯେତେ ଅଧିକାର ଅଛନ୍ତି ମୋହର ସେସବୁକୁ ବୁଝୁଥାଅ ହେ ଜ୍ୟେଷ୍ଠଭ୍ରାତ ।୬। ମୁଁ ବୋଲଇ ଥାଉ ଜ୍ୟେଷ୍ଠଭ୍ରାତ ମୁହିଁ ହୋଇବି ସେବକ ଯାତ ତବ ପାଦସେବା ନିତ୍ୟ କରୁଥିବ ନହୋଇବ ରାଜାତ ହେ ଜ୍ୟେଷ୍ଠଭ୍ରାତ । ୮ । ଏତିକିମାତ୍ର ଦୋଷ ମୋହର, କରି ଅଛୁ ମୁଁ ତବ ପଦର, ସେଥିପାଇଁ ମୋତେ କି ମନ୍ତ୍ରର କରି ସଙ୍ଗେ ନେଲ ମୁ ସାଗର ହେ ଜ୍ୟେଷ୍ଠଭ୍ରାତ ।୯। ଯେ ସମସ୍ତ ଜାଣିନପାରିଲି, ବଞ୍ଚୁଥିରେ ଧାଡ ହୋଇଥିଲି ମନରହୁ ମୋତେ ଛନ୍ଦରେ ପକାଇ ଦେଲ ଜାଣିନ ପାରିଲ ହେ ଜ୍ୟେଷ୍ଠଭ୍ରାତ । ୧୦। ଯେଠାରେ ମୋତେ ଭୁଲାଇ ଦେଲ, ବୋମ୍ବାଇରେ ପହଞ୍ଚିଲେ ଯାଇଁ, ତହୁଁ କଲ୍ଲପରେ ରହିବା ଅନ୍ତରେ ଖବର ଆସିଲା ଥାଇ ଦିହ ଜ୍ୟେଷ୍ଠଭ୍ରାତ । ୧୧ । ଶୁଣି ମାତା ଭ୍ରାତୃଙ୍କ

ମୁହିଁ, ସେଠାରେ କିଛି କହିଲି ନାହିଁ, ହରିମୁଦ୍ରିକାରୁ ଭଣ୍ଡି ନେଇକରି ଖେଷରେ ଦେଲି ଶୁଣ ଇ ହେ ଜ୍ୟେଷ୍ଠଭ୍ରାତ ।୧୨। ଶୁଣିବା ମାତ୍ରେ ମାତା ମୋହର, ହସ୍ତୁ ଫିଙ୍ଗିଲେ ଚୂଡ ସୁନ୍ଦର, ତା ଦେଖି ମୋ ମନ ଜଳେ ହୁତା ଶନ ଭାବିଲି ମରିବି ଏଠାରେ ହେ ଜ୍ୟେଷ୍ଠଭ୍ରାତ ।୧୩। ମୋତେ ପ୍ରହର ଏ କରିଥିଲେ, କେହି ଭୟେ କିଛି ନ କହିଲେ, ଗୋଟିଏ ଚଟିଯୁ ହୋଇଲି ଉଦସ୍ତୁ ଭଗବାନ ଏହା କଲେ ହେ ଜ୍ୟେଷ୍ଠଭ୍ରାତ ।୧୪। ମୋ ମନ ସଦା କହିଲା ଏହା ଯେବେ ମରିବୁରେ ପୁଷ୍ଟ ଦେହ ଭଉଜ ମାତ ତୋ ନଷ୍ଟ ମରିବ ଲାଗିଲେ କେବେହେ ସାହା ହେ ଜ୍ୟେଷ୍ଠଭ୍ରାତ ।୧୫। ତୁହ ନିଷ୍ଠୁରରେ ଗଢ଼େଯାଅ ଭଉଜ ଯଦି ସେବେ ଥାଅ ନୋହିଲେ ନରହତ୍ୟା ଦୋଷ ପାଇବୁ ପାପରେ ଭାଗୀ ନ ହୁଅ ହେ ଜ୍ୟେଷ୍ଠଭ୍ରାତ ।୧୬। କହିଲେ ଅଜ କାଷ ହୋଇବ କର୍ମେ ଯାହା ଭୁଞ୍ଜିବାର ଥିବ ଏ ହତ୍ୟାପାକର ମାତା ଭଉଜଙ୍କର ଚନ୍ଦ୍ରାହ୍ନୁର କରିଇବ ହେ ଜ୍ୟେଷ୍ଠଭ୍ରାତ ।୧୭। ଏତକି ମାଗ ଜଣ ଏ ଭ୍ରାତ, ମାତାଙ୍କୁ ଫେଡ଼ ହେରତ, ଦୂରତ ନାଶନ ବାନା ଉଡ଼ାଇଣ ସ୍ୱର୍ଗରେ ଅମର ହୁଅ ହେ ଜ୍ୟେଷ୍ଠଭ୍ରାତ ।୧୮।

—*—

## ବସ୍ତର ମହାରାଣୀଙ୍କ ଶୋକ ।

କାହ୍ନୁଚନ୍ଦ୍ର ବସ୍ତର ରାଜାଙ୍କର ନନ୍ଦନ, ଶୁଣ ସ୍ୱର୍ଗେ ଥାଇ ମନ୍ଦୁର ଭଞ୍ଜରମଣୀ ହେ ଉତ୍କଳ ସୁତ, କି ଦୋଷ କଲି ମୋତେ କଲେ ବର୍ଜିତ, ହେ ଉତ୍କଳସୁତ ।୧। ତୁମ୍ଭଙ୍କର ପର ଦେଶଗୁର ମୁହିଁ, ସତେ କି ପାରିବି ଏ ଭବରେ ଥାଇ ହେ ଉତ୍କଳସୁତ, ତବ ଲାଗି ସିନା ମୁଁ ରାଜ୍ୟେ ବଦାର ହେ ।୨। ଏମନ କାଳ ମୋ ରାଜା ସାଙ୍ଗୁ ଥିଲ, ମୋ ମନ କଥା ତୁମ୍ଭଙ୍କୁ ଜଣାଇଲି ହେ, ସମ୍ପୂର୍ଣ୍ଣ କଲେ, ଶିବଙ୍କୁ ସେବିବାର ଫଳକୁ ଦେଲେ ହେ ।୩। କିଛି ଚିନ୍ତିବା କି ହୋଇଲା ଉଚିତ; କାହା ନାମେ ହେବି ମୁଁ ଉତ୍କଳବର୍ତ୍ତ ହେ ଏ ସଂସାରରେ ଆଶା ବୃକ୍ଷ ଉପୁଡ଼ି ଗଲା ଭୂମିରେ ହେ ।୪। ଯେତେବେଳେ ମୋ

ଦୈତ୍ୟ ପଡ଼ିଛି ଗଲେ, ମୋହର ଦୁରିତକୁ ବିନାଶ କଲେ ହେ ଦୈତ୍ୟଙ୍କ ଗର୍ବ, ନିମିଷ ମାତ୍ରକେ କଲାଇଲେ ଖର୍ବ ହେ । ୫ ମୋ ପତି ତବ ବିଚ୍ଛେଦରେ, କାତର ସଦା ସର୍ବଦା ହେଉଛନ୍ତି ଆତୁର ହେ, ଏହା ଭ୍ରାତ ଭ୍ରାତ, କି ଦୋଷ ଦେଖି ମୋତେ କଲେ ବର୍ଜିତ ହେ । ୬ । ଆଜ ଟେକି ଅଧିବ ଆମ୍ଭର ଶ୍ରେଷ୍ଠଙ୍କୁ, ଭୁଞ୍ଜା ସୁଞ୍ଜା କରିବ ଆମ୍ଭ ଦୁଃଖଙ୍କୁ ହେ, ମୋ ମାନ୍ୟବର, ଦୟା କରି କି ଫେରିବେ ଏ ମର୍ତ୍ତ୍ୟ ହେ । ୭ । କି ଗାଇବ ଆପଙ୍କ ଗୁଣ କୋଟି ଯାହାଙ୍କ ସୁଜନେ ଗାଇ ନ ପାରନ୍ତି ହେ, ଗଙ୍ଗା ପ୍ରସାଦ, କବିକୁଳେ କଳଙ୍କ ଲେଖୁଛି ପଦ ହେ । ୮ ।



## ଦାସୀମାନଙ୍କ ଶୋକ ।

କାହୁଁ ଚନ୍ଦ୍ର ଦାସୀମାନେ ଅତି ବିକଳରେ, କେଉଁଣେ ଛାଡ଼ିଗଲେ ପ୍ରଭୁ ଆମ୍ଭଙ୍କୁ ଏ ଘରେ ମହାରାଜ ହେ କାହା ଯୋଗୁଥିରୁ ଏ ସମାଜ ହେ । ୧ । କାହାପାଇଁ ସଜାଇବୁ ଏ ରତ୍ନ ପଲଙ୍କ ଆଉ କାହାର ଶୁଣିବୁ ସୁସ୍ୱର ଡାକ ମହାରାଜ ହେ, ଆମ୍ଭ କର୍ମ ପୋଡ଼ିଲାଟି ଆଜ ହେ । ୨ । କାହାପାଇଁ ଭାଙ୍ଗିଥିବୁ ଏ ବଡ଼ଆ ପାନ, ଆଦର ଭରେ ଭାଙ୍ଗିବୁ ତାମ୍ବୁଳ ଦେଇଣ ମହାରାଜ ହେ, କି ଦୋଷ ଦେଖି ଆମ୍ଭଙ୍କୁ ତେଜ ହେ । ୩ । କିଏ ଅଣାଇଦେବ ଆମ୍ଭଙ୍କୁ ନୂଆ ଭୂଷା, କାହାପଥ ଚାହିଁ ଅଟେମୁ କଟାଇବୁ ନିଶା, ମହାରାଜ ହେ, କି ଦୋଷ ଦେଖି ଆମ୍ଭଙ୍କୁ ବର୍ଜ ହେ । ୪ । କିଏ ପାଳିତ କନ୍ୟାଙ୍କୁ କରିବେ ପ୍ରଦାନ, ନାନା ଭାଷାରେ ତୋଷିବେ ଆମ୍ଭର ଯେ ମନ ମହାରାଜ ହେ କାହାକୁ ଚଳିବା ନୂଆ ସାଜ ହେ । ୫ । ଯେବେ ଅନୁଗ୍ରହ ଅଛି ଆମ୍ଭର ଉପରେ ଅନୁଗ୍ରହେ ନେଇ ଯାଅ ତୁମ୍ଭ ପାଶରେ ମହାରାଜ ହେ ଯେବେ ସେଠାରେ ପଦବ୍ରଜ ହେ । ୬ ।



## ପ୍ରଜାମାନଙ୍କର ଶୋକ ।

କିଯୋଗେ ବୃଦ୍ଧଯାତ୍ରିକା ପଡ଼ିଥିଲା ଧନ ଯୋଗ୍ୟ ହୋଇଲା-କୋମଳ-ବନ୍ଧୁ, କେ ଛଡ଼ାଇ ନେଲ ଗଳ୍ପରେ, ମଧୁବାବୁ । ୧ । ଲଗାଇଚୁ ଏକି ଲୀଳା, ଦାନବନ୍ଧୁଙ୍କର ବୃଦ୍ଧ ବେଳାରେ ମଧୁବାବୁ, ଗତବ ହେଲୁ ଏକାଣି ପଗଳାରେ । ୨ । କରମ ମନ୍ଦ ଆମ୍ଭର, ହରାଇଲୁ ସୁଖ ଚନ୍ଦ୍ର ବର ହେ ମହାରାଜ, କି ଦୋଷ ଥିଲା ଆମ୍ଭର ହେ । ୩ । ଆମ୍ଭଙ୍କୁ କନ୍ଦାଇ ଉଦମ୍ଭ ସ୍ୱର୍ଗ ଧାମେ ଗଲ ମହା ଆନନ୍ଦେ ହେ ମହାରାଜ, ବସି ରହ ନନ୍ଦନ ବନେ ହେ । ୪ । କିଏ କ୍ରିକେଟ, ଖେଳବ, ପ୍ରାଇଜ ଆଣି ପ୍ରଶଂସା କରାଇବ ହେ ମହାରାଜ, ଉତ୍କଳର କେ ନାମ କରିବ ହେ । ୫ । କିଏ ଡାକ୍ତରଖାନାରେ ଲକ୍ଷ ଲକ୍ଷ ଟଙ୍କା ଦେବେ ଦାନରେ ହେ ମହାରାଜ, ଯୁଦ୍ଧ ଅନ୍ଧ ଓ ମହୋତ୍ସବରେ । ୬ । ଇଲେକ୍‌ଟ୍ରିକ୍ ମାନ ଆଣି ଦେଖାଇବ ରାଜ୍ୟ ଲୋକଙ୍କୁ, ଜାଣି ହେ ମହାରାଜ, ସବୁ ସୁଖ ହେଲା ଆମ୍ଭ ପାଣି ହେ ୭ । ହାତିଧର ବାଘମାର କିଏ ଦେଖାଇବ ଆମ୍ଭଙ୍କୁ ପର ହେ ମହାରାଜ, ଭୁଲିଣ ଜଙ୍ଗଲ ଯାଉ ହେ ମହାରାଜ । ୮ । ଦରବାର ହାଲକଥା ବର୍ଣ୍ଣି ନ ପାରିବ ଏଥିରେ ଯେଥ ମହାରାଜ, ନାନା ରଙ୍ଗରେ ବର୍ଣ୍ଣିତା ।୯। ସଉଖିନ ଦ୍ରବ୍ୟମାନ ମଠର ଗଛ ଓ ଜାନ ବାହାନ ହେ ମହାରାଜ, ନୂତନ ନୂତନ ନାଟମାନ ।୧୦। ଆମ୍ଭର ପୂର୍ବ ପୁରୁଷ ଯାହା ନ ଶୁଣି ଅଛନ୍ତି ଅବଶ୍ୟ ହେ ମହାରାଜ ତାହା ଦେଖି ହୋଇଚୁ ହରଷ ହେ ।୧୧। କେତେତ କନ୍ୟାକୁ ପାଳିଣ ଦାନ କରିବ ଉତ୍କଳ ମଧ୍ୟେଣ ହେ ମହାରାଜ, ଯାହା ଶୁଣିବାକୁ ସ୍ୱପନ ହେ । ୧୨ । କି ବର୍ଣ୍ଣିବ ଗୁଣ ତବ, ସତେକି ଏ ଭବେ ଫେରିଆସିବ ହେ ମହାରାଜ, ସତେ ଆମ୍ଭ ଗୁହାରି ଶୁଣିବ । ୧୩ । ଧନ୍ୟ ଆରେ ବନ୍ଧୁବର ଦାନ ଜନଙ୍କୁ ନ ରଖି ଭବର ରେ ମଧୁବାବୁ ଏହି, ବୁଝାମଣା କି ତୋହର ରେ ୧୪ କାହିଁକି କିଏ ମାନବ କାହିଁକି ହେ ଆଉ ଦାନ କରିବ ରେ ମଧୁବାବୁ, ଭଜ ଭଣଇ ଗଙ୍ଗା ପ୍ରସାଦ ରେ ମଧୁବାବୁ । ୧୫ ।

---

# ବିଜ୍ଞାପନ ।

ସ୍ୱର୍ଗୀୟ ମହାରାଜା ଶ୍ରୀଯୁକ୍ତ ରାମଚନ୍ଦ୍ରଭଞ୍ଜଦେବଙ୍କ ବିରଚିତ ନୂତନ ପୁସ୍ତକ "ଜଣାଣ ଅମୂଲ୍ୟ ରତ୍ନ" ମାତୃଭାଷାରେ ଲିଖିତ । ଏଥିରେ ଶାରଳାଙ୍କ ଜଣାଣ, ଜଗନ୍ନାଥଙ୍କ ଜଣାଣ, ବିରଜେଶ୍ୱରୀଙ୍କ ଜଣାଣ, ବୁଢ଼ାଠାକୁରାଣୀଙ୍କ ଜଣାଣ, ଶ୍ରୀକୃଷ୍ଣଙ୍କ ଜଣାଣ ଶିବଙ୍କ ଜଣାଣ, ଦୁର୍ଗାଙ୍କ ଜଣାଣ, କାଳିଙ୍କ ଜଣାଣ ଅମ୍ବିକେଶ୍ୱରଙ୍କ ଜଣାଣ, ସାକ୍ଷିଗୋପାଳଙ୍କ ଜଣାଣ, ଅନ୍ୟାନ୍ୟ ଦେବା—ଦେବମାନଙ୍କ ଜଣାଣ ଏଥିରେ ସନ୍ନିବେଶିତ ହୋଇଅଛି । ଆମ୍ଭେ ଏହା ସ୍ଥାପକଗଣ ଏକପଦଖଣ୍ଡୀ ବିତରଣ କରୁଅଛୁ ଓ ଅନ୍ୟକୁ ସୁଲଭମୂଲ୍ୟରେ ବିକ୍ରୟ କରୁଅଛୁ । ନିମ୍ନଲିଖିତ ଠିକଣାରେ ତତ୍ତ୍ୱ କଲେ ପାଇ ପାରିବେ ଯେଉଁମାନେ ଗ୍ରାହକ ହେବେ ପତ୍ର ଲେଖନ୍ତୁ ଓ ଯେଉଁମାନେ ବିତରଣ ନେବେ ସେମାନେ ଏକ ଅଣାର ଟିକଟ ଲଫାପା ମଧ୍ୟରେ ପଠାଇଲେ ଆମ୍ଭେ ତାହା ସୁନ୍ଦର ରୂପେ ପଠାଇଦେବୁ । ସ୍ୱର୍ଗୀୟ ମହାରାଜାଙ୍କର ଅନ୍ୟାନ୍ୟ ପୁସ୍ତକମାନ ପରେ ଛପା ହେବ—— ଏହା ଅଗଷ୍ଟ ମାସରେ ଛପା ହେବ । ଇତି ।

ଆମ୍ଭ ଦୋକାନରେ ସର୍ବପ୍ରକାର ପୁସ୍ତକମାନ ମିଳେ ପୁରୁଣା ଶାସ୍ତ୍ର ପାଠ୍ୟ ପୁସ୍ତକ, ଗୀତା, ଗୀତ, ସ୍ତୁତି, ସଙ୍ଗୀତ, ଭଜନ, ଶୋକ ଓ ରୋଗର ବନ୍ଦ୍ୟାର୍ଥେ ପ୍ରସ୍ତୁତ ଅଛି ଅର୍ଡର ପାଇଲେ ପାର୍ଶେଲ ଯୋଗେ ପଠାଉଁ । ଇତି.

ଏକମାତ୍ର ପ୍ରାପ୍ତି ସ୍ଥାନ :—

ଶ୍ରୀ ଗଙ୍ଗାପ୍ରସାଦ ସିଂହ ।

ମାହିଦାର ବଜାର ।

ପୋଃ ଅଃ ଚାନ୍ଦନୀଚୌକ—କଟକ ।

---

**Printed by Prabhash Chandra Roy**
**at the Gowree Sanker Press,**
**CUTTACK.**
**1923**